# ପରିଶ୍ରମ ।

Sons of Ind ! why sit ye idle ?
Wait ye for some Deva's aid ?
Buckle to ; be up and doing ;
Nations by themselves are made.

"Old man's Hope."

'ସମ୍ବଲପୁର ହିତୈଷିଣୀ' ପତ୍ରିକାର ସମ୍ପାଦକ
ଶ୍ରୀଦୀନବନ୍ଧୁ ପଟ୍ଟନାୟକଙ୍କ ଦ୍ୱାରା
ସଙ୍କଳିତ ଓ ପ୍ରକାଶିତ ।

ହିତୈଷିଣୀ ଇଲେକ୍ଟ୍ରିକ ମେଶିନ ପ୍ରେସରେ
ମୁଦ୍ରିତ ।

ବାମଣ୍ଡା ।

୧୯୧୨

ମୂଲ୍ୟ ଏକଅଣା ମାତ୍ର ।

ଉତ୍କଳର

ଭବିଷ୍ୟତ୍ ଆଶା ଭରସାର ସ୍ଥଳ

ବାଳକ ଓ ଯୁବକ ମାନଙ୍କ

ହସ୍ତରେ

'ପରଶୁରାମ'

ସାଦରେ

ଅର୍ପିତ ହେଲା ।

# ଭୂମିକା ।

'ପରିଶ୍ରମ' କେତେକ ଖଣ୍ଡି ଇଂରେଜୀ ପୁସ୍ତକରୁ ସଂଗୃହୀତ । ଅନୁବାଦ କାଳରେ ଯେତେଦୂର ସାଧ୍ୟ ପାଶ୍ଚାତ୍ୟ ଭାବ ରଖା ଯାଇ-ଅଛି । ଅନେକ ସମୟରେ ଭାଷାକୁ ଦେଖିବାକୁ ଗଲେ ମୂଳଭାବ ନଷ୍ଟ ହେବା ସମ୍ଭବ ପର । ଏହେତୁ ପାଠକ ମାନଙ୍କ ନିକଟରେ କୌଣସି ସ୍ଥଳରେ ଭାଷାନେଇ ଅଡୁଆ ଲାଗିପାରେ, କିନ୍ତୁ କଥା କହିବା ପରି ପାଠ କଲେ ସେ ଅଡୁଆ ରହିବ ନାହିଁ- କଥା କହିବା ବେଳେ ଭାଷା ଧରାଯାଏ ନାହିଁ । ବୈଦେଶିକ ଭାଷା ହେତୁ ଭାଷା ଧରିଲେ ଭାବ, ଭାବ ଧରିଲେ ଭାଷା ନଷ୍ଟ ହେବା ମୋପରି ଲୋକ ପକ୍ଷେ ସ୍ୱାଭାବିକ । ଯାହାହେଉ ଏପୁସ୍ତକରେ ଭାଷା ଓ ଭାବ ସାମଞ୍ଜସ୍ୟ ରଖିବା ନିମନ୍ତେ ଯତ୍ନରେ ତ୍ରୁଟି କରିନାହିଁ ।

'ପରିଶ୍ରମ' ବାଳକ ଓ ଯୁବକ ମାନଙ୍କ ହିତ କାମନାରେ ଲିଖିତ । ସେମାନେ କଷ୍ଟ ସ୍ୱୀକାର କରି ଏହି ପୁସ୍ତକ ଆଦ୍ୟୋପାନ୍ତ ପାଠକଲେ ତାହାର ପରିଶ୍ରମ ବ୍ୟର୍ଥ ହେବ ନାହିଁ- ସେମାନଙ୍କ ଜୀବନରେ ଗୋଟିଏ ମହାଶିକ୍ଷା ମିଳି ପାରିବ, ଏହା ଦୃଢ଼ତାର ସହିତ କୁହାଯାଇ ପାରେ ।

ବାମଣ୍ଡା,
ଜନ୍ମାଷ୍ଟମୀ
ତା ୪ ସେପ୍ଟେମ୍ବର ୧୯୬

ଶ୍ରୀଦୀନବନ୍ଧୁ ଗଡନାୟକ ।

# ପରିଶ୍ରମ ।

କଦାଚ କିଛି ଅପବ୍ୟୟ ନକର କିନ୍ତୁ ସମସ୍ତ ଅପେକ୍ଷା ସମୟ ଅପବ୍ୟୟ ନକର । ଆଜି ଦିନଟି ଥରେକ ପାଇଁ ଆସିଅଛି , ଆଉ ଫେରି ଆସିବ ନାହିଁ । ସମୟ ସ୍ୱର୍ଗୀୟ ମୂଲ୍ୟବାନ୍ ଦାନ ସକଳ ମଧ୍ୟରେ ଗୋଟିଏ, ଥରେ ହରାଇଲେ ପରିଶୋଧ ହୁଏନାହିଁ ।

ଡ୍ରାଇଡେନ କହି ଅଛନ୍ତି:--- ଗତ ସମୟ ଉପରେ ଈଶ୍ୱରଙ୍କର ମଧ୍ୟ କ୍ଷମତା ନାହିଁ, ଯାହା ଗତ ହୋଇଅଛି , ଗତ ହୋଇଅଛି ; ମୋର ସମୟ ପଶ୍ଚାତ୍ ମୋର ଥିଲା ।

ପରବର୍ତ୍ତୀ ସମୟରେ ତୁମ୍ଭେ ନିଜକୁ ଭର୍ତ୍ସନା କରିବ ଏପରି ଭାବେ ବର୍ତ୍ତମାନ ତୁମ୍ଭର ସମୟକୁ ବ୍ୟୟ ନକର । "ଅତିବିଳମ୍ବ", "ଏହା ହୋଇ ପାରିଥାନ୍ତା" ଏଥିରୁ ବଳି ଅଧିକ ଗ୍ଲାନିକର କଥା ନାହିଁ । ସମୟ ଆମ୍ଭମାନଙ୍କର ବିଶ୍ୱସ୍ତ ଗଚ୍ଛିତ , ଏହାର ପ୍ରତ୍ୟେକ ମିନିଟର ହିସାବ ରଖ । ସ୍ୱଳ୍ପ ନିଦ୍ରାଯାଅ , ମିତାହାରୀ ହୁଅ ଏବଂ ବିଶେଷ ଭାବେ ସମୟ ସଞ୍ଚୟ କର ।

ନେଲସନ ଏକଦା କହି ଅଛନ୍ତି , ସେ ତାଙ୍କ ଜୀବନରେ ସମସ୍ତ ସଫଳତା ଲାଭ କରିଥିବାର କାରଣ ଏହି ଯେ ଯଥା ସମୟର ୧୫ ମିନିଟ ପୂର୍ବରୁ ସେ କାର୍ଯ୍ୟ କ୍ଷେତ୍ରରେ ଉପସ୍ଥିତ ହୁଅନ୍ତି । ଲର୍ଡ ମେଲବର୍ଣ୍ଣ କହି ଅଛନ୍ତି:--- "କୌଣସି ବାଳକ ଆଉ କୌଣସି ଉପଦେଶ ନଶୁଣି ଏତିକି ଶୁଣିବାରେ : ତୁମ୍ଭେ ତୁମ୍ଭର ପଥ ତିଆର

କର, ଏହା ତୁମ୍ଭର ପରିଶ୍ରମ ଉପରେ ନିର୍ଭର କରେ, ତୁମ୍ଭେ ଅନାହାରରେ ରହିବ ଅଥବା ସୁଖରେ ରହିବ” ।

ଅଧିକନ୍ତୁ, ପରିଶ୍ରମ ସଫଳତାର କେବଳ ମୂଳଭିତ୍ତି ନୁହେ, ନୈତିକ ଚରିତ୍ର ଉପରେ ମଧ୍ୟ ଏହାର ଅସାଧାରଣ କ୍ଷମତା ଅଛି ।

ଜେରେମି ଟେଲର କହି ଅଛନ୍ତି:--- 'ଅଳସ ନହୁଅ, କିନ୍ତୁ ତୁମ୍ଭର ସମୟର ସର୍ବାଂଶ କଠୋର ଏବଂ ଆବଶ୍ୟକୀୟ କାର୍ଯ୍ୟ ଦ୍ୱାରା ପୂର୍ଣ୍ଣକର; ମନ ଯେଉଁଠାରେ ନିଯୁକ୍ତ ନଥାଏ ସେହି ଛିଦ୍ରବାଟେ ରିପୁ ସହଜରେ ପ୍ରବେଶ କରେ ଏବଂ ଶରୀର ତାହାର ଆୟତ୍ତାଧୀନ ହୁଏ; କୌଣସି ବିଳାସୀ, ସୁକ୍ଷ୍ମଦେହୀ, ଆଳସ୍ୟ ପରାୟଣ ବ୍ୟକ୍ତି ଏହାର ଆକର୍ଷଣରେ ପଡ଼ି ସଚ୍ଚରିତ୍ର ହୋଇ ପାରିନାହିଁ; ସକଳ କାର୍ଯ୍ୟ ଅପେକ୍ଷା ଶାରୀରିକ ପରିଶ୍ରମ ଅଧିକ ଅବଶ୍ୟକୀୟ; ଶୟ୍ତାନ ପଳାୟନ କରେ, ସୁତରାଂ ବିଶେଷ ଉପକାର ମିଳେ । କେବେଲଙ୍କ କଥାନୁସାରେ ପୃଥିବୀ ଓ ସମୟ ସ୍ୱର୍ଗ ଓ ଅନନ୍ତ କାଳ ନିମନ୍ତେ ସୃଷ୍ଟି ।

ଯେତେ କ୍ଷୁଦ୍ର ହେଉ ପଛେ ଅନ୍ୟର ସୁଖ ଓ ଭଲ ନିମନ୍ତେ କିଛି କରିବାହିଁ ସର୍ବଶ୍ରେଷ୍ଠ ଉଚ୍ଚାକାଙ୍କ୍ଷା, ଉଚ୍ଚ-ଆଶା, ଏହି ଭାବ ମାନବର ହୃଦୟରେ ଅନୁପ୍ରାଣିତ ହେବା ଉଚିତ ।

କଥିତ ଅଛି, ପିଟ୍ରୋ ମେଡିସି ଏକଦା ମିଚେଲ୍ ଏଞ୍ଜେଲୋଙ୍କୁ ବରଫର ଗୋଟିଏ ପ୍ରତିମୂର୍ତ୍ତି ନିର୍ମାଣ କରିବାକୁ ନିଯୁକ୍ତ କରିଥିଲେ; ଏହା ମୂଲ୍ୟବାନ୍ ସମୟକୁ ନିର୍ବୋଧ ଭାବେ ଅପବ୍ୟୟ କରିବା ମାତ୍ର; ଏଞ୍ଜେଲୋଙ୍କ ସମୟ ପୃଥିବୀ ନିମନ୍ତେ ମୂଲ୍ୟବାନ ଥିଲା, ଆମ୍ଭମାନଙ୍କ ସମୟ ଆମ୍ଭମାନଙ୍କ ପକ୍ଷେ ମୂଲ୍ୟବାନ୍, ତଥାପି ଆମ୍ଭେମାନେ ସର୍ବଦା ବରଫର ପ୍ରତିମୂର୍ତ୍ତି ନିର୍ମାଣ କରିବାରେ ଅପବ୍ୟୟ କରୁଁ, ଏମନ୍ତ କି ତହିଁରୁ ମନ୍ଦ, ବାଲୁଅର ପିଣ୍ଡୁଳା ତିଆର କରୁଁ ।

ଗ୍ଲେଡ୍ଷ୍ଟୋନ୍ ବିଖ୍ୟାତ ଦାର୍ଶନିକ ଏବଂ ରାଜନୀତିଜ୍ଞ ଦୈନିକ କହି ଅଛନ୍ତି:--- "ଆମ୍ଭେମାନେ ସମୟର ଅଳ୍ପତା ସମ୍ବନ୍ଧେ ଆପତ୍ତି କରୁଁ, ତଥାପି ଆମ୍ଭେମାନେ ଏହି ସମୟରେ ଯାହା କରିବାକୁ ଚାହୁଁ, ତାହା ଅପେକ୍ଷା ଆମ୍ଭମାନଙ୍କର ଅଧିକ ସମୟ ଅଛି । ଆମ୍ଭମାନଙ୍କ ଜୀବନ କିଛି ନ କରି ଗଡ଼ୁଛି କିମ୍ବା ଯାହାକରୁଁ ଉଦ୍ଦେଶ୍ୟ ଅନୁସାରେ ନୁହେ, ଅଥବା ଏପରି କରାଯାଏ କରିବାର ଉଚିତ ନୁହେ । ଆମ୍ଭେମାନେ ସର୍ବଦା କହୁଁ ଯେ ଆମ୍ଭମାନଙ୍କ ଦିବସ ଗୁଡ଼ିକ ଅଳ୍ପ ; ଏବଂ ଯେପରି କି ସେସବୁ ଦିବସ ମାନଙ୍କର ଶେଷ ନାହିଁ ଏପରି ଭାବେ କାର୍ଯ୍ୟ କରୁଁ" ।

ନେହିମିୟା ପାରସ୍ୟର ରାଜାଙ୍କ ସିଂହାସନର ପଶ୍ଚାତରେ ଠିଆ ହୋଇ ହଠାତ୍ କାଳେ ଈଶ୍ୱରଙ୍କୁ ପ୍ରାର୍ଥନା କରିବାକୁ ଅନେକ ସମୟ ପାଉଥିଲେ ।

ସମୟକୁ ସୁନ୍ଦର ଭାବେ ଓ ଦକ୍ଷତାର ସହିତ ବ୍ୟବହାର କର । ଅନେକ ଭାଗ୍ୟବାନ ଲୋକ ଅନେକ କାର୍ଯ୍ୟ ଅସମ୍ପନ୍ନ କରିଥିବେ, ଅନେକ ପୁସ୍ତକ ପାଠ କରି ନଥିବେ, ଅନେକ ମହାପୁରୁଷ ଦୃଶ୍ୟ ଓ ଅନେକ ଦେଶ ଦେଖିନଥିବେ ।

ସାଧୁ ଏବଂ ଦୃଢ଼ କାର୍ଯ୍ୟ ନିମନ୍ତେ ଧାରଣ-ଶକ୍ତି ଜୀବନରେ ସଫଳତା ଏବଂ ସୁଖ ଲାଭର ପ୍ରଧାନ ମୂଳ ଉପାଦାନ ।

ସିସିରୋ କହିଥିଲେ:--- ପ୍ରଥମରେ ଆବଶ୍ୟକ କଣ ? ନିର୍ଭୀକତା, ଦ୍ୱିତୀୟରେ ଆବଶ୍ୟକ କଣ ? ନିର୍ଭୀକତା, ତୃତୀୟରେ ନିର୍ଭୀକତା । ଆତ୍ମ-ପ୍ରତ୍ୟୟ ନିଃସନ୍ଦେହରେ ଅବଶ୍ୟକ, କିନ୍ତୁ ତହିଁରୁ ଅଧିକ, ଅଧ୍ୟବସାୟ ବା ନିଯୁକ୍ତ ଚେଷ୍ଟା ଆବଶ୍ୟକ, ଦ୍ୱିତୀୟରେ ଅବଶ୍ୟକ ଓ ତୃତୀୟରେ ଆବଶ୍ୟକ । ଏହା ନିଶ୍ଚୟ, କାର୍ଯ୍ୟ ଖେଳ ବ୍ୟତୀତ ଅଧିକ କିଛି ନୁହେ--- ଏହା ଜୀବନର ପ୍ରୟୋଜନ;

ଉଭୟର ଉଦ୍ଦେଶ୍ୟ ଏକ ।

କାର୍ଯ୍ୟ ଯେପରି ମନର ଶାନ୍ତି ନିମନ୍ତେ, ସେପରି ଶରୀରର ସ୍ୱାସ୍ଥ୍ୟ ନିମନ୍ତେ ପ୍ରୟୋଜନ । ଏହି ଅବସର ବରଂ ଏକ ପରିମାଣର କାର୍ଯ୍ୟ ଅପେକ୍ଷା ଅଧିକ କ୍ଲାନ୍ତିକର । ବରଂ ଆମ୍ଭମାନଙ୍କ ଶରୀରର ସମସ୍ତ ଅବୟବକୁ ନଷ୍ଟ କରେ ; କାର୍ଯ୍ୟ ସୁସ୍ଥ ରଖି ଉତ୍ସାହିତ କରେ । ମାଂସପେଶୀର ଚାଳନା ଶରୀରକୁ ସୁସ୍ଥ ରଖେ ଏବଂ ମସ୍ତିଷ୍କର ଚାଳନା ମନକୁ ଶାନ୍ତି ଆଣେ । ଡେକାର୍ଟ କହି ଅଛନ୍ତି— ମାନସିକ ପରିଶ୍ରମ ଦ୍ୱାରା ଯେ କେହି ହୃଦୟରେ ସୁସ୍ଥିରତା ରକ୍ଷା କରି ପାରେ ।

ତୁମ୍ଭେ ଯାହା ଇଚ୍ଛା କର, କିଛି କର । ଏପରି କି ସ୍ୱର୍ଣ୍ଣମଣି ପାଇବା ନିମନ୍ତେ ଚେଷ୍ଟା କର ତହିଁରୁ କିଛି ଫଳ ଉତ୍ପାଦନ କର ।

ଡାକ୍ତର ଜନସନ କହି ଅଛନ୍ତି— "ଶବ୍ଦ ପୃଥିବୀର କନ୍ୟା, କିନ୍ତୁ କାର୍ଯ୍ୟ ସ୍ୱର୍ଗର ସନ୍ତାନ", ତୁମ୍ଭେ ଯାହା କିଛି କର, ସମ୍ପୂର୍ଣ୍ଣ ରୂପେ କର । ତୁମ୍ଭର ହୃଦୟ ତହିଁରେ ରଖ । ମନୋବୃତ୍ତି ସକଳର ଅନୁଶୀଳନ କର ; ତୁମ୍ଭେ ଏହି ସକଳର ବ୍ୟବହାର କର, ନଚେତ୍ ସବୁ ନଷ୍ଟ ହେବ । ନବ ନବୋନ୍ମେଷ ଶାଳିନୀ ବୁଦ୍ଧିବିଶିଷ୍ଟ ବ୍ୟକ୍ତି ମାନଙ୍କର ଜୀବନ ଚରିତ ବିଧି ସମକ୍ଷରେ ଅବିଚଳିତ ଭାବେ ପରିଶ୍ରମର ବର୍ଣ୍ଣନା ମାତ୍ର । କେତେକ ଆଦର୍ଶ ପ୍ରତିଭା ଶାଳୀ ବ୍ୟକ୍ତି ପ୍ରତିଭାକୁ ପରିଶ୍ରମରୁ ସାମାନ୍ୟ ଅଧିକ ବୋଲି କହନ୍ତି ।

ବିବେଚନା କରି ଦେଖିଲେ ଭିକ୍ଷା କାର୍ଯ୍ୟ ଅପେକ୍ଷା କଠିନ ଏବଂ ସମୁଦାୟ ଧରାଗଲେ ସେପରି ମିଳେ ନାହିଁ । ଅଧିକନ୍ତୁ ପ୍ରତ୍ୟେକ ବ୍ୟକ୍ତି ଆପଣାର ପଦରେ ଠିଆ ହେବାର ଉଚିତ । ଫ୍ରେଙ୍କଲିନ କହନ୍ତି, ଜଣେ ପରାଧୀନ ଭଦ୍ରଲୋକ ଅପେକ୍ଷା ଆପଣା ପଦରେ ଠିଆଥିବା ଜଣେ କୃଷକ ଶ୍ରେଷ୍ଠ ।

କୋବେଟ ତାଙ୍କର ପ୍ରସିଦ୍ଧ ଇଂରେଜୀ ବ୍ୟାକରଣ ସମ୍ବନ୍ଧେ କହନ୍ତି "ମୁଁ ଯେତେବେଳେ ଦୈନିକ ଛ ପେନ୍ସ (ପ୍ରାୟ ଛ ଅଣା) ବେତନରେ ପ୍ରାଇଭେଟ ସୈନିକ କାର୍ଯ୍ୟ କରୁଥିଲି ସେତେବେଳେ ଇଂରେଜୀ ବ୍ୟାକରଣ ଶିକ୍ଷା ଆରମ୍ଭ କଲି । ପ୍ରହରୀ ହେବା ସ୍ଥାନ ଅଥବା ଶୋଇବାର ଖଟ ମୋର ପଠନାଗାର ଥିଲା, ଖଣ୍ଡେ କାଠ ପଟାରେ ମୁଁ ଲେଖା ଲେଖି କରେ, ଏହି କାର୍ଯ୍ୟ କରିବାକୁ ମୋର ଜୀବନରେ ଗୋଟି ବର୍ଷପ୍ରାୟ ଲାଗିଥିଲା । ମୋମବତି କିମ୍ବା ତେଲ କିଣିବାକୁ ମୋର ପଇସା ନଥିଲା, ଶୀତ କାଳରେ କୌଣସି ସନ୍ଧ୍ୟାରେ ଅଗ୍ନି ବ୍ୟତୀତ ଆଲୋକ ଦୁଷ୍ପ୍ରାପ୍ୟ ହେଉଥିଲା । ସେତେବେଳେ କାଳି, କଲମ କିମ୍ବା କାଗଜ କିଣିବାକୁ ଗୋଟିଏ ପଇସା ଯୋଗାଡ଼ କରିବା ସହଜ ନଥିଲା । ଗୋଟିଏ ପଇସା, ହାୟ! ସେତେବେଳେ ମୋତେ ଅନେକ ଟଙ୍କା; ମୁଁ ବର୍ତ୍ତମାନ ଯେତେ ଉଚ୍ଚ, ସେତେବେଳେ ସେତେ ଉଚ୍ଚ ଥିଲି, ମୁଁ ବେଶ ସୁସ୍ଥ ଥିଲି ଏବଂ ଖୁବ ବ୍ୟାୟାମ କରୁଥିଲି । ମୁଁ ଏକଦା ଅତି କଷ୍ଟରେ ଗୋଟିଏ ଅର୍ଦ୍ଧପେନି (ପ୍ରାୟ ଦୁଇ ପଇସା) ସଞ୍ଚୟ କରି ପରଦିନ ସକାଳେ ଗୋଟିଏ ଲାଲମତ୍ସ୍ୟ କିଣିବାକୁ ରଖିଥିଲି କିନ୍ତୁ ରାତ୍ରରେ ପ୍ରାଣାନ୍ତ କ୍ଷୁଧା ହେବାରୁ କୋଟ ଖୋଲି ଦେଖିଲି ଅର୍ଦ୍ଧପେନିଟି ହଜି ଯାଇଅଛି !! ମୁଁ ମୋର ମସ୍ତକକୁ ଶଯ୍ୟାରେ ପୋତି ବାଳକ ପରି କାନ୍ଦିଲି ! ବର୍ତ୍ତମାନ ମୁଁ କହେଁ, ମୁଁ ଯେତେବେଳେ ଏପରି ଅବସ୍ଥାରେ ଥାଇ, ବାଧା ଅତିକ୍ରମ କରିବାକୁ ଅଗ୍ରସର ହୋଇ, କାର୍ଯ୍ୟ ଶେଷ କରିଅଛି, ପୃଥିବୀରେ କୌଣସି ଯୁବକ କାର୍ଯ୍ୟ ଅପୂର୍ଣ୍ଣ ରଖିଲେ କ୍ଷମା ଦିଆ ଯାଇ ପାରେ କି ?"

କୋବେଟଙ୍କର ଅର୍ଥ ନଥିଲା କିନ୍ତୁ ତାଙ୍କର ଉଦ୍ୟମ ଓ ସାହସ ଥିଲା । ବେକନ କହନ୍ତି, "ଅନେକ ଲୋକ ସେମାନଙ୍କର ଧନ କିମ୍ବା ବଳ ସମ୍ବନ୍ଧେ ଜାଣନ୍ତି ନାହିଁ, ସେମାନେ ଧନକୁ ବଡ ଓ

ବଳକୁ ସାମାନ୍ୟ ବୋଲି ବିଶ୍ବାସ କରନ୍ତୁ । ଆତ୍ମ ନିର୍ଭର ଓ ସ୍ବାର୍ଥ-ତ୍ୟାଗ ଆପଣା ଜଳାଶୟରୁ ଜଳପାନ କରିବାକୁ ଓ ନିଜର ସୁସ୍ବାଦୁ ଅନ୍ନ ଖାଇବାକୁ ଶିକ୍ଷାଦିଏ, ପ୍ରକୃତ ଅହାର୍ଯ୍ୟ ଦ୍ରବ୍ୟ ପାଇବା ନିମନ୍ତେ ପରିଶ୍ରମ କରିବାକୁ ଓ ଆପଣା ଜିମ୍ମାଥିବା ଭଲ ବିଷୟ ସକଳ ବିହିତ ଭାବେ ବ୍ୟୟ କରିବାକୁ ଶିକ୍ଷାଦିଏ" ।

ଇଂରେଜୀରେ ଗୋଟିଏ ପ୍ରବାଦ ଅଛି;-- ଶାୟିତ ସିଂହ ଅପେକ୍ଷା, ଭୁକିଲା କୁକୁର ଭଲ ।

'ପ୍ରକୃତ' ନାମକ ବହି କହୁ ଅଛନ୍ତି, "ମୂଲ୍ୟ ପାଅ ଅବା ନପାଅ ପ୍ରତ୍ୟେକ ଘଣ୍ଟା କାର୍ଯ୍ୟ କର, ଦେଖ କେବଳ ଯେପରି ତୁମ୍ଭେ କାର୍ଯ୍ୟ କରୁଥିବ, ପୁରସ୍କାରରୁ ବଞ୍ଚିତ ହେବ ନାହିଁ; ତୁମ୍ଭର କାର୍ଯ୍ୟ ସୁନ୍ଦର କିମ୍ବା ମୋଟା ରକମ ହେଉ, ଶସ୍ୟ ରୋପଣ କିମ୍ବା ମହାକାବ୍ୟ ଲିଖନ ହେଉ, ତାହା ସାଧୁ କାର୍ଯ୍ୟ ଏବଂ ତୁମ୍ଭର ଅନୁମୋଦିତ ହେଲେ, ଜ୍ଞାନ ଓ ଶାନ୍ତି ପୁରସ୍କୃତ ହେବେ । ଯେତେଥର ପରାଜୟ ହେଲେ ସୁଦ୍ଧା ଚିନ୍ତା ନାହିଁ, ଜୟ ଲାଭ କରିବାକୁ ତୁମ୍ଭେ ଜନ୍ମ ଗ୍ରହଣ କରିଅଛ । କୌଣସି କାର୍ଯ୍ୟ ଭଲଭାବେ କରାଗଲେ ତହିଁର ପୁରସ୍କାର ହେଉଅଛି, 'ସିଦ୍ଧିଲାଭ' ବା 'କାର୍ଯ୍ୟ ସମାପନ'। "

ସାର ଓ୍ବାଲଟର ସ୍କଟ କହି ଅଛନ୍ତି:--- ବିଖ୍ୟାତ ଯାଦୁକର ମାଇକେଲ ସ୍କଟ ତାଙ୍କର ସଙ୍ଗୀ ପିଶାଚକୁ ସର୍ବଦା କାର୍ଯ୍ୟରେ ନିଯୁକ୍ତ କରି ସେ ଆପଣାକୁ ରକ୍ଷା କରୁଥିଲେ । ଏହି କଥା ଆମ୍ଭ ସମସ୍ତଙ୍କ ଠାରେ ପ୍ରଯୁଜ୍ୟ । ପାପ ପିଶାଚକୁ ଦୂର କରି ଦିଆଗଲେ ସୁଦ୍ଧା ପୁଣି ଶୂନ୍ୟ ଗୃହ ପାଇଲେ ସେ ତାହାଠାରୁ ମନ୍ଦ ଆଉ ସାତୋଟି ପିଶାଚ ସହିତ ପୁନରାଗମନ କରେ ।

ଆଳସ୍ୟ ବିଶ୍ରାମ ନୁହେ । ରୋମାନ ମାନଙ୍କର ଗୋଟିଏ ପ୍ରବାଦ ଅଛି:-- କିଛି କରିବାକୁ ନଥିଲେ ବିଶ୍ରାମ କରିବା କଷ୍ଟ ।

କଦାପି ବ୍ୟସ୍ତ ହୁଅନା । ପ୍ରକୃତ ବ୍ୟସ୍ତ ହେବନାହିଁ । ସୁଇଜରଲ୍ୟାଣ୍ଡର ଏକଜଣ ପଥ ପ୍ରଦର୍ଶକ ଗୋଟିଏ ପର୍ବତାରୋହଣକାରୀ ଯୁବକକୁ ଉପଦେଶ ଦେଇଥିଲେ , "ଧୀର ଏବଂ ଦୃଢ଼ଭାବେ ଗମନ କର", "ଅତି ଚଞ୍ଚଳ ଯିବାକୁ ଚେଷ୍ଟା କରିବ ନାହିଁ ବା ବିଳମ୍ବ କରିବ ନାହିଁ" । ସକଳ ଅବସ୍ଥାରେ କ୍ଷଣ କାଳ ନିମନ୍ତେ ବିଶ୍ରାମ କରିବ । ଜୀବନରେ ଉନ୍ନତିର ପ୍ରଧାନ ଗୁପ୍ତ-ବିଷୟ ଏହି ଯେ, କଦାପି ବ୍ୟସ୍ତ ହେବ ନାହିଁ କିମ୍ବା ବିଳମ୍ବ କରିବ ନାହିଁ । ଅନେକେ ବିବେଚନା କରନ୍ତି ବ୍ୟସ୍ତ ହେଲେ ସମୟ ବଞ୍ଚାଇ ପାରିବେ । ଏହା ସମ୍ପୂର୍ଣ୍ଣ ଭ୍ରମ । କୌଣସି କାର୍ଯ୍ୟ ଅତି ଚଞ୍ଚଳ କରିଗଲେ ଅଧିକ କ୍ଳାନ୍ତି, ଅଧିକ ପରିଶ୍ରମ ବୋଧହୁଏ ।

କଠିଣ ପରିଶ୍ରମ କର , ବ୍ୟସ୍ତ ହୁଅନା , ବିଶ୍ରାମ କରନା ଏବଂ କ୍ଳାନ୍ତ ହୁଅନା ।

ଫ୍ରାନ୍ସିସ ଗେଲ୍‌ଟନ କହି ଅଛନ୍ତି , "ତୁମ୍ଭର ଯାହାର କ୍ରମଶଃ ଉନ୍ନତି ନିମନ୍ତେ ଉତ୍ସୁକ ହୁଅ ଏବଂ ତାହାଁର ଶେଷ ସୀମା ଦେଖିବା ନିମନ୍ତେ ଅଗ୍ରହାନ୍ୱିତ ହୋଇ ଦୃଷ୍ଟି ନିକ୍ଷେପ କରିବ ନାହିଁ । ଦୈନିକ କୌଣସି ଲୋକ ୩ ମାଇଲ ଗମନ କଲେ ବର୍ଷ ଶେଷକୁ ସେ ୧୦୦୦ ମାଇଲ ଭ୍ରମଣ କରି ଥିବାର ଦେଖିବ । ଶଶକ ଓ କଚ୍ଛପର ଗଳ୍ପ ତୁମ୍ଭେମାନେ ଶୁଣିଥିବ ।

ପ୍ରତ୍ୟୁଷରୁ ଉଠିବ , ମାଂସ ପେଶୀ ଏବଂ ମସ୍ତିଷ୍କକୁ ଉପଯୁକ୍ତ ଭାବେ ଚାଳନା କରିବ ଓ ବିଶ୍ରାମ ଦେବ , ମିତାହାରୀ ହୁଅ , ଅବଶ୍ୟକାନୁସାରେ ନିଦ୍ରା ଯାଅ , ବିଷୟ ଗୁଡିକ ସହଜ ଭାବେ ଗ୍ରହଣ କର । କ୍ଳାନ୍ତି , ଉତ୍ତେଜନା , ଅପରିଷ୍କୃତା, ଉଦ୍ବେଗ ତୁମ୍ଭକୁ କାର୍ଯ୍ୟରେ ଉନ୍ନତ କରିଦେବେ ନାହିଁ , ତୁମ୍ଭକୁ ବିନାଶ କରି ପାରନ୍ତି ଅଥବା କୌଣସି ପ୍ରକାରେ କୌଣସି ପୀଡ଼ାର କବଳରେ ପକାଇ ପାରନ୍ତି ;

କିନ୍ତୁ ଯଦ୍ୟପି ମନକୁ ପ୍ରଫୁଲ୍ଲତା, ଶାନ୍ତ ଭାବ, ମାନସିକ ଚଳନା ଏବଂ ସ୍ୱାଧୀନ ଚିନ୍ତା ଦିଅ ଏବଂ ଶରୀରକୁ ବିଶୁଦ୍ଧ ବାୟୁ ଦିଅ ତେବେ ସେମାନେ ତୁମ୍ଭର ଜୀବନକୁ ଦୀର୍ଘକାଳ ସ୍ଥାୟୀ କରିବେ ।

ଡେରେନପୋର୍ଟ ଆଡାମଙ୍କର 'Plain Living and High Thinking' ନାମକ ଇଂରେଜୀ ପୁସ୍ତକରେ ଲିଖିତ ଅଛି, ଅଧ୍ୟବସାୟ ରାଜନୀତିଜ୍ଞ ମାନଙ୍କର ମସ୍ତିଷ୍କ, ଯୋଦ୍ଧାର ତରବାରି, ଆବିଷ୍କାରକର ଗୁପ୍ତ-ରହସ୍ୟ, ବିଦ୍ୱାନର ସିସେମ (Sesame-ତିଳ ଶସ୍ୟ, ଆରବ୍ୟ ଉପନ୍ୟାସର ଆଲିବାବା ଗଳ୍ପରେ ଦ୍ୱାରୋଦ୍ଘାଟନ ମନ୍ତ୍ର ବିଶେଷ) ।

ସ୍ୱର୍ଗୀୟା ମହାରାଣୀ ଭିକ୍ଟୋରିୟା କେବଳ ସୁବିଚାର, ଓ ବିଚକ୍ଷଣ ନିମନ୍ତେ ନୁହେ, ପରିଶ୍ରମ କରୁଥିଲେ ବୋଲି ଏତେ ଯଶ ଉପାର୍ଜନ କରିଥିଲେ, ଏକଦା ଲର୍ଡ ମର୍ଣ୍ଣେଗଲ୍ କୌଣସି ରାଜ-କାର୍ଯ୍ୟରେ ବିରକ୍ତ କରିବାକୁ ବାଧ୍ୟ ହେଉଥିବା କଥା କହିବାରେ ମହାରାଣୀ କହିଲେ "ବିରକ୍ତ ଶବ୍ଦ କଦାଚ ପ୍ରକାଶ କରିବ ନାହିଁ, ଉଚିତ ଭାବେ କଣ କର୍ତ୍ତବ୍ୟ ତାହା କହ, ଯଦି ମୋଦ୍ୱାରା ହୋଇପାରେ ତେବେ କରିବି" ।

ଡିଉକ୍ ଅବ୍ ଓ୍ୱେଲିଂଟନ ପ୍ରଧାନ ସୈନ୍ୟାଧ୍ୟକ୍ଷ ପଦର ଉପ-ଯୁକ୍ତ ପାତ୍ର ଥିବାରୁ ସେ ଅନେକ ଯୁଦ୍ଧରେ ଜୟ ଲାଭ କରିଥିଲେ । ସେ ସୈନିକ ମାନଙ୍କର ରସଦ, ବାରୁଦ, ଘୋଡାର ଦାନା ପ୍ରଭୃତି ସକଳ ବିଷୟରେ ସୂକ୍ଷ୍ମାଦପି ସୂକ୍ଷ୍ମରୂପେ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ ।

ପରିଶ୍ରମ ନିଜେ ଆପଣାର ପୁରସ୍କାର ଆଣେ । କଲମ୍ବସ ଭାରତ ବର୍ଷକୁ ପଥ ଅନୁସନ୍ଧାନ କରୁଁ କରୁଁ ଆମେରିକା ଆବିଷ୍କାର କରିଥିଲେ ।

ଫ୍ରାଙ୍କଲିନ କହି ଅଛନ୍ତି, "ତୁମ୍ଭର ଯାହା କରିବା ଉଚିତ ସମାଧା କରିବାକୁ ଦୃଢ଼ ପ୍ରତିଜ୍ଞା କର, ଏବଂ ଯାହା ପ୍ରତିଜ୍ଞା କରି-ଅଛ ନିଶ୍ଚୟ ସମାଧା କର" । ଅନେକ ବଡ଼ ବଡ଼ ଲୋକ ଯୁବାବସ୍ଥାରେ

ତତ୍ପର ନଥାଇ ପରିଶ୍ରମ ହେତୁ ଭୁବନ ବିଖ୍ୟାତ ହୋଇ ଅଛନ୍ତି, ଯଥା ; ଉଇଲିଂଟନ, ନେପୋଲିୟନ, କ୍ଲାଇଭ ଏବଂ ପିଟ । ବିଚକ୍ଷଣ ହୋଇ ମଧ୍ୟ ଅସାବଧାନ, ଅଳସ ଏବଂ ଉଚ୍ଛୃଙ୍ଖଳ ହେଲେ ଅବନତ ହୁଏ । ଧୀର ଅଥଚ ପରିଶ୍ରମୀ, ସାବଧାନୀ ହୋଇ ଉଚିତ ମୌଳିକ ତତ୍ତ୍ୱରେ ମନୋନିବେଶ କଲେ ଉନ୍ନତ ହୁଏ । ପରିଶ୍ରମୀ ଓ ଚରିତ୍ରବାନ୍ ନହେଲେ ସୁଯୋଗ, ଚତୁରତା, ଧନୀବନ୍ଧୁ କିମ୍ବା କ୍ଷମତାଶାଳୀ ଆତ୍ମୀୟ କାହାର ଦ୍ୱାରା କିଛି ହୁଏନାହିଁ ।

ଗ୍ରୋସେଟେଷ୍ଟି ନାମକ ଏକଜଣ ବିଖ୍ୟାତ ଧର୍ମ୍ମ ଯାଜକଙ୍କର ଜଣେ ଅଳସୁଆ ଭାଇ ଥିଲା, ସେ ଏକଦିନ ଆସି ବଡ଼ ଲୋକ ହେବାକୁ ପ୍ରାର୍ଥନା କଲା । ଧର୍ମ୍ମ ଯାଜକ କହିଲେ, ଭାଇ ! ତୋର ଲଙ୍ଗଳ ଭାଙ୍ଗିଲେ ନୂତନ ଲଙ୍ଗଳ ଦେବି, ବଳଦ ମରିଗଲେ ବଳଦ କିଣିଦେବି, କିନ୍ତୁ ତୋତେ ବଡ଼ ଲୋକ କରି ପାରିବି ନାହିଁ । ତୁ କୃଷକ ଭାବେ ରହ ।

ତୁମ୍ଭେ କୌଣସି କାର୍ଯ୍ୟ ପ୍ରସନ୍ନ ଚିତ୍ତରେ କଲେ ତାହା ସହଜରେ କରି ପାରିବ ।

ଜ୍ଞାନୀ ମାନଙ୍କର ପ୍ରତ୍ୟେକ ସ୍ଥାନ ସ୍ୱଦେଶ ଏବଂ ସନ୍ତୁଷ୍ଟ ବ୍ୟକ୍ତିର ସର୍ବଦ ପ୍ରାସାଦ ।

'ପ୍ରକୃତି' (Nature) ବିରୁଦ୍ଧରେ କାର୍ଯ୍ୟ କରିବ ନାହିଁ, ତାହାକୁ ସୁବିଧା ଦେଲେ ସେ ଅମ୍ଭମାନଙ୍କ ସକାଶେ କାର୍ଯ୍ୟ କରିବ । ଯେ ପ୍ରକୃତିର ନିୟମକୁ ମାନି ଚଳେ ସମସ୍ତ ବିଷୟ ଏକତ୍ର ହୋଇ ତାହାର ମଙ୍ଗଳ ନିମନ୍ତେ କରୁଥିବାର ଦେଖା ପଡ଼ିବ ।



ଶାରୀରିକ ପରିଶ୍ରମ କରିବାକୁ ଇଚ୍ଛା ବୋଧ କରିବ ନାହିଁ । ଏକଜଣ ଚୀନା କବି କହି ଅଛନ୍ତି, "ତୁମ୍ଭର ଶାଦ୍ୟର ପ୍ରତ୍ୟେକ

ଶସ୍ୟ କୃଷକର ସ୍ୱେଦ ସହିତ ଜଳ ସେଚନ କରି ହୋଇଅଛି" ।
ପୃଥିବୀର ଅନେକ ବଡ ବଡ ଲୋକ, ସମ୍ରାଟ, ଓ ମହାତ୍ମାମାନେ
ସେମାନଙ୍କର କର୍ତ୍ତବ୍ୟ ବ୍ୟତୀତ କୌଣସି ପ୍ରକାର ବାହୁ ଦ୍ୱାରା ପରି-
ଶ୍ରମ ଜନକ କାର୍ଯ୍ୟ କରୁଥିଲେ:---

ସମ୍ରାଟ ଆଓରଙ୍ଗଜେବ 'କୋରାନ' ଲେଖି ମକ୍କାରେ ବିକ୍ରୟ କରି ଅପଣାର ଖରଚ ଚଳାଉଥିଲେ, ପିଟର ବଢ଼ୈ ପେଡ଼ାରିକ ବଢ଼ାଇ କାମ କରୁଥିଲେ, ଇଣ୍ଟଫଙ୍କ ଜୋତା ତିଆର କରୁଥିଲେ, ମିଷ୍ଟର ଗ୍ଲାଡଷ୍ଟୋନ ବୃକ୍ଷ କର୍ତ୍ତନ କରୁଥିଲେ । ତୁମ୍ଭେମାନେ ଯୁବକ, ଓ ବଳବାନ୍, ଶାରୀରିକ ପରିଶ୍ରମରେ ତତ୍ପର ହେବାକୁ ଶିକ୍ଷା କର; ଏହା ଠିକ୍ ଯେ ହସ୍ତର କାର୍ଯ୍ୟ ମସ୍ତିଷ୍କର କାର୍ଯ୍ୟର ବିଶେଷ ସହାୟକାରୀ । କୃଷି ଦ୍ୱାରା ତୁମ୍ଭର ଜୀବନୋପାୟର ଶିକ୍ଷା କର । ବାଣିଜ୍ୟ ଶିଳ୍ପ କିମ୍ବା କୌଣସି ଦ୍ରବ୍ୟ ନିର୍ମ୍ମାଣ ଶିକ୍ଷା କର । ସକଳ ଅପେକ୍ଷା ପୈତୃକ ବ୍ୟବସାୟ ବୁଦ୍ଧିମାନ ଏବଂ ସମ୍ମାନର କାର୍ଯ୍ୟ । ତଦ୍ଦ୍ୱାରା ଅସୀମ ଉନ୍ନତ କରାଯାଇ ପାରେ । ପିତାର ଉଚିତ ଯେ ସେ ପୁତ୍ରକୁ ସ୍ୱବ୍ୟବସାୟରେ ତାଙ୍କୁ ଯେତେ ପ୍ରକାର ପ୍ରଣାଳୀ ଜଣା ଅଛି ଏବଂ ବହୁଦର୍ଶିତା ଲବ୍ଧ ହୋଇଅଛି, ଶିକ୍ଷା ଦେବେ ଏବଂ ଉତ୍ସାହ ପ୍ରଦାନ କରିବେ । ଯୋଗ୍ୟ ଏବଂ ପରିଶ୍ରମୀ ବ୍ୟକ୍ତିମାନଙ୍କ ପାଇଁ ବାଣିଜ୍ୟ ଓ ବ୍ୟବସାୟ ସର୍ବଦା ଉନ୍ମୁକ୍ତ ଅଛି, କେବଳ ଅଳସୁଆ ଓ ପ୍ରବଞ୍ଚକମାନଙ୍କ ପକ୍ଷେ କଷ୍ଟକର । ଦିନଦିନ ସଭ୍ୟତା ବୃଦ୍ଧି ସଙ୍ଗେ ସଙ୍ଗେ ଜୀବନୋପାୟ ପାଇଁ ଶିଳ୍ପର ବୃଦ୍ଧି ଓ ଉନ୍ନତି ହେଉଅଛି, ବାଣିଜ୍ୟ ଓ ବ୍ୟବସାୟ ବହୁଗୁଣ ବୃଦ୍ଧି ହେଉଅଛି, ପୃଥିବୀରେ ଯେତେ ଅଧିକ ଲୋକ ଜନ୍ମ ହେଲେ ମଧ୍ୟ ସମସ୍ତଙ୍କ ପାଇଁ ସ୍ଥାନ କିମ୍ବା ଖାଦ୍ୟ ଅଭାବ ହେବ ନାହିଁ ।

ସାଧାରଣର ମଙ୍ଗଳ ନିମନ୍ତେ ଲେଖକର ଯେପରି ଆବଶ୍ୟକ

ମଜୁରଦାରର ମଧ୍ୟ ସେପରି ଅବଶ୍ୟକ । କୌଣସି ମଜୁରଦାର ନିଜର ନାମ ସ୍ୱାକ୍ଷର କରି ନଜାଣିଲେ ଯେପରି ଲଜ୍ଜିତ ହେବାର କଥା, ଜଣେ ଲେଖକ ଘରର କାନ୍ଥରେ ଗୋଟାଏ କଣ୍ଟା ମାରି ନଜାଣିଲେ ମଧ୍ୟ ସେପରି । ମାନସିକ ପରିଶ୍ରମ ଶରୀର ଦାମ୍ଭିତ୍ୱ ପୂର୍ଣ୍ଣ, ଏହାର ବ୍ୟବହାର ଓ କାର୍ଯ୍ୟ ସବୁ ଠିକଭାବେ ହେବାର ଉଚିତ । ସୁତରାଂ ସକଳ କାର୍ଯ୍ୟ ଦ୍ୱାରା ପ୍ରମାଣିତ ନହେଲେ ସ୍ୱପ୍ନ ପରି । ମାନସିକ ଆଳସ୍ୟ ବଡ ଅନିଷ୍ଟ କାରକ । ମାନସିକ ପରିଶ୍ରମ ଉଚ୍ଚଗୁଣର ସାକ୍ଷ୍ୟ ସ୍ୱରୂପ, ଏହାର ଶେଷରେ ସଫଳ ଓ ସମ୍ମାନ ।

ସକଳ ଲୋକର ଆପଣା ଅପଣା କାର୍ଯ୍ୟ ଅଛି, ସେମାନେ ସେମାନଙ୍କର କାର୍ଯ୍ୟ ଅବଶ୍ରାନ୍ତ ଯତ୍ନ ସହ କରିବା ଉଚିତ । ବିଦ୍ୟାଳୟର ଛାତ୍ରମାନେ ନିୟମ ଅନୁଯାୟୀ ଶିକ୍ଷା କରିବେ । ପରିବାରର କର୍ତ୍ତା ସମସ୍ତଙ୍କର ଭରଣ ପୋଷଣ ଏବଂ ବାଳକ ବାଳିକା ମାନଙ୍କର ଶିକ୍ଷାର ସୁବନ୍ଦୋବସ୍ତ କରିବେ । ଧର୍ମ୍ମ-ପ୍ରଚାରକ ମନୁଷ୍ୟ ମାନଙ୍କୁ ପାପ ଓ ଭ୍ରମ ପରିତ୍ୟାଗ କରି ଧର୍ମ୍ମ ଓ ସତ୍ୟ ପଥରେ ଚାଲିବାକୁ ଉପଦେଶ ଦେବେ । ସମସ୍ତ ଲୋକ, ଯାହାର ଜୀବନର କର୍ତ୍ତବ୍ୟ ଜ୍ଞାନ ଅଛି, ଯତ୍ନ ଓ ପରିଶ୍ରମ କରିବାକୁ ସ୍ୱୀକାର କରିବେ । ପ୍ରତ୍ୟେକ ଲୋକ, ପ୍ରତ୍ୟେକ ଶ୍ରେଣୀର ଲୋକ, ସ୍ୱକାର୍ଯ୍ୟ ସାଧନ ନିମନ୍ତେ ପରିଶ୍ରମ କଲେ ସମାଜ ଉନ୍ନତ ହୁଏ । ପୂର୍ବକାଳରେ ହିନ୍ଦୁ ସମାଜ ପ୍ରଧାନତଃ ଚାରିଟି ଜାତିରେ ବିଭକ୍ତ ହୋଇଥିଲା, ପ୍ରତ୍ୟେକ ଜାତି ଆପଣାର କାର୍ଯ୍ୟ କରୁଥିଲେ । ଫଳତଃ ମନୁଷ୍ୟ ମାନଙ୍କର ସାମାଜିକ ଜୀବନରେ ଦୃଢତା ଓ ସୁଖ ଥିଲା । ବ୍ରାହ୍ମଣମାନେ ଶିକ୍ଷା ଏବଂ ଧର୍ମ୍ମ କାର୍ଯ୍ୟରେ ନିଯୁକ୍ତ ଥିଲେ । କ୍ଷତ୍ରିୟ ମାନେ ଯୁଦ୍ଧାଦି କାର୍ଯ୍ୟ କରି ଦେଶରକ୍ଷା କରୁଥିଲେ, ବୈଶ୍ୟମାନେ ବାଣିଜ୍ୟ କରି ଦେଶରେ ଧନ ପୂର୍ଣ୍ଣ କରୁଥିଲେ ଏବଂ ଶୂଦ୍ରମାନେ ଭାରତଭୂମିକୁ ପ୍ରଚୁର ଫଳ ଶସ୍ୟାଢ୍ୟ

ଉପବନରେ ପୂର୍ଣ୍ଣ କରିଥିଲେ । ବର୍ତ୍ତମାନ ଏ ନିୟମ ଭଙ୍ଗ ହୋଇ-ଥିବାରୁ ଲୋକେ ଅପରାର ବ୍ୟବସାୟ ଠିକ କରି ପାରିବାକୁ ନାହାନ୍ତି ।

ରେଭରେଣ୍ଡ ଟି, ବନେ କହି ଅଛନ୍ତି, "ସତ୍ କାର୍ଯ୍ୟ ଜଗତ୍ ଖଣାର ଦ୍ଵାରରେ ଧ୍ୱନି କରେ, ସମସ୍ତ ନୈତିକ ସ୍ଥାନକୁ ସ୍ପର୍ଶକରେ, ପ୍ରତ୍ୟେକ ଜଗତ ପରିଦର୍ଶନ କରେ, ଅସୀମ ଦୂର ପର୍ଯ୍ୟନ୍ତ ସ୍ପନ୍ଦନ କରେ ଏବଂ ଏହି ସ୍ପନ୍ଦନ ଈଶ୍ୱରଙ୍କର ହୃଦୟ ସ୍ପର୍ଶ କରେ" ।

ହେରୋ ସ୍କୁଲରେ ଗୋଟିଏ ଅତି ଗରିବ ବାଳକ ଥିଲା, ତାହାର ଇଚ୍ଛା ଯେ ସେ ଚାରି ଘୋଡାର ଗାଡ଼ୀରେ ବସିବ, କାଳ କ୍ରମେ ସେ ଡାକ୍ତର ପାର୍ ବୋଲି ସୁପ୍ରଖ୍ୟାତ ଥିଲେ, ସେ ସମୟରେ ସେ ସର୍ବ ପ୍ରଧାନ ସ୍ଥାନୀ ଥିଲେ । ଚାରି ଘୋଡାର ଗାଡ଼ୀରେ ବସି-ଥିଲେ । ଓ୍ୱାରେନ ହେଷ୍ଟିଙ୍ଗ୍ସ ଯେତେବେଳେ ବାଳକ, ତାଙ୍କର ପୈତୃକ ସମସ୍ତ ଭୂସମ୍ପତ୍ତି ବନ୍ଧକ ହୋଇଗଲା, ସେ ତେତେବେଳେ ଉକ୍ତ ସମ୍ପତ୍ତି ପୁନରୁଦ୍ଧାର କରିବାକୁ ସଂକଳ୍ପ କରିଥିଲେ, ସମ-ୟରେ କୃତକାର୍ଯ୍ୟ ହୋଇଥିଲେ ।

ପ୍ରାୟ ୭୦ ବର୍ଷ ଗତ ହେଲାଣି, ଗୋଟିଏ ଯିହୁଦୀ ବାଳକ ତାହାର ସଙ୍ଗୀ ମାନଙ୍କୁ କୌତୁକରେ କହେ "ମୁଁ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ହେବି", ପ୍ରକୃତରେ ସେ ପ୍ରଧାନ ମନ୍ତ୍ରୀ ହୋଇଥିଲେ, ତାଙ୍କର ନାମ ବେଞ୍ଜାମିନ ଡିସ୍‌ରେଲି । ରବାର୍ଟ ପିଲ୍ ମଧ୍ୟ ବାଳକ ସମୟେ ଏହି ପରି ଆଶାକରି ଯଥା କାଳରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ହୋଇ-ଥିଲେ । ପ୍ରାୟ ୬୦ ବର୍ଷ ଗତ ହେଲାଣି ଗୋଟିଏ ଧନ ହୀନ ଅସୁନ୍ଦର ବାଳକ, ଯେତେବେଳେ ତାହାର ବୟସ ୧୭ ବର୍ଷ ସେ ରେଲୱାଇର ନାବିକ, ୨୦ ବର୍ଷ ବୟସରେ ରେଲୱେର ଲାଇନର ସାମାନ୍ୟ କର୍ମଚାରୀ, ବ ୨୨ ର୍ଷ ବୟସରେ ଗୋଟିଏ କ୍ଷୁଦ୍ର ଦୋକାନର ପ୍ରଧାନ କର୍ମଚାରୀ ଥିଲା ତଥାପି ହସି ହସି କହେ, "ଚିନ୍ତା ନାହିଁ, ମୁଁ

ଆମେରିକାର ପ୍ରେସିଡେଣ୍ଟ ହେବ” । ପ୍ରକୃତରେ ସେ ଅମେରିକାର ପ୍ରେସିଡେଣ୍ଟ ହୋଇଥିଲେ--ତାଙ୍କର ନାମ ଏବ୍ରାହାମ ଲିଙ୍କୋଲନ ।

ପୃଥିବୀରେ ଧନକୁବେର ମାନେ କେଉଁ ଉପାୟରେ ଅର୍ଥ ସଞ୍ଚୟ କରି ଅଛନ୍ତି ତାହାଁର ବିବରଣୀ ନିମ୍ନେ ଦିଆଗଲା ।

ବିଖ୍ୟାତ ଗ୍-ବ୍ୟବସାୟୀ ମିଃଲପ୍‌ଟନ ବାଲ୍ୟ କାଳରେ ଗ୍ଲାସ-ଗୋର ଗୋଟିଏ ଦୋକାନରେ ବିଗଳଗ୍ଧ କାର୍ଯ୍ୟ କରୁଥିଲେ । ଏହି ସମୟେ ସେ ସାପ୍ତାହିକ ଯେ ୫୯।୵ ବେତନ ପାଉଥିଲେ, ତାହାଁରୁ ଅମେରିକା ଗମନର ପାଥେୟ ସ୍ୱରୂପ କିଛି କିଛି ସଞ୍ଚୟ କରୁଥିଲେ । ଅମେରିକାରେ ପହଞ୍ଚି ତାହାଙ୍କୁ ଅମେରିକାର ଆଷ୍ଟ୍ରେଷରେ ସାମାନ୍ୟ ମଜୁର ପରିଶ୍ରମ କରିବାକୁ ପଡ଼ୁଥିଲା । ଏଠାରେ ମଧ୍ୟ ସେ ସଞ୍ଚୟରୁ ବିରତ ହୋଇ ନଥିଲେ । ଏହି ପରିତେ ଯେତେବେଳେ ସେ ୫୧୫୦୦୲ ସଞ୍ଚୟ କଲେ, ସେତେବେଳେ ଗ୍ଲାସ୍‌ଗୋରୁ ଅପି ଗୋଟିଏ ଦୋକାନ ଖୋଲିଲେ । ଏଠାରେ ମଧ୍ୟ ସେ ଏପରି ମିତବ୍ୟୟୀ ଥିଲେ ଯେ ଶୟନ ଗୃହର ଅଭାବରେ ସେ ତାଙ୍କର ନିଜ ଦୋକାନର ପଶ୍ଚାଭାଗରେ ସଙ୍କୀର୍ଣ୍ଣ ସ୍ଥାନରେ ଶୟନ କରୁଥିଲେ ।

ପୃଥିବୀର ସର୍ବ ପ୍ରଧାନ ଧନକୁବେର ମିଃ ରକ୍‌ଫେଲର ବାଲ୍ୟ-କାଳରେ ଏକ ସମୟେ କ୍ରମାଗତ ଗ୍ରମାସ ପର୍ଯ୍ୟନ୍ତ ସାଧାରଣ ରୁଟୀ ଓ ଗୁଡ଼ଖାଇ କଟାଇ ଦେଇଥିଲେ । ଏହି ଉପାୟରେ ସେ ୫୩୦୦ ସଞ୍ଚୟ କଲେ । ତହୁଁ ପରେ ଏକଖଣ୍ଡ କ୍ଷେତ୍ର କୁଡ଼ିଏ ଲକ୍ଷ ଅର୍ଦ୍ଧ-ମୂଲ୍ୟରେ ବିକ୍ରୀତ ହେଉ ଥିବାର ଦେଖି ସେ ତାହା କ୍ରୟ କଲେ । ଏହା ବିକ୍ରୟ କରି ସେ ୫୧୮୦୦୲ ପ୍ରାପ୍ତ ହୋଇଥିଲେ ।

ଦାନବୀର କାର୍ଣ୍ଣେଗୀ ଏଗାର ବର୍ଷ ବୟସରେ ଗୋଟିଏ କପଡ଼ାର କଳର ତନ୍ତ୍ର କାର୍ଯ୍ୟ କରୁଥିଲେ । ଏହି ସମୟରେ ସେ ସାପ୍ତାହିକ ୫୩୵ ପାଉଥିଲେ । ତାହାଙ୍କ ଏପରି କଠୋର ପରିଶ୍ରମ

କରିବାକୁ ହୁଏ ଯେ କେବେହେଁ ସନ୍ଧ୍ୟା ପୂର୍ବରୁ ଗୃହକୁ ଫେରନ୍ତି ନାହିଁ । ଏହିପରି କଷ୍ଟ ମଧ୍ୟରେ ସୁଦ୍ଧା ସେ ଅର୍ଥ ସଞ୍ଚୟରେ ବିମୁଖ ହୋଇନାହିଁ । ୧୮ ବର୍ଷ ବୟଃକ୍ରମ ସମୟରେ ସେ ୫୦,୧୫୦ ସଞ୍ଚୟ କରି କୌଣସି କୋମ୍ପାନୀର ଅଂଶ ଗ୍ରହଣ କଲେ । ଏହିଠାରୁ ତାଙ୍କର ସୌଭାଗ୍ୟର ସୂତ୍ରପାତ ହେଲା ।

ବିଖ୍ୟାତ ବନ୍ଧୁକ ନିର୍ମାତା ହିରାମ ମ୍ୟାକ୍ସିମଙ୍କର ନାମ ଅନେକଙ୍କୁ ଜଣା ଅଛି । ବାଲ୍ୟ ସମୟରେ ତାହାଙ୍କୁ ତାଙ୍କର ପିତାଙ୍କର କ୍ଷେତରେ ଚାଷ କରିବାକୁ ହୁଏ ବୋଲି ସେ ଆଦୌ ଅର୍ଥ ସଞ୍ଚୟ କରିପାରୁ ନଥିଲେ । ଅନ୍ୟ କୌଣସି ଉପାୟ ନଦେଖି ସେ ଶ୍ରେଷ୍ଠ ଶ୍ରେଷ୍ଠ ଧନୁକ ଓ ଖେଳନା ବନ୍ଧୁକ ପ୍ରସ୍ତୁତ କରି ତାଙ୍କର ସଙ୍ଗୀମାନଙ୍କ ନିକଟରେ ଅର୍ଦ୍ଧ ମୂଲ୍ୟରେ ବିକ୍ରୟ କରିବାକୁ ଲାଗିଲେ । ଏହି ଉପାୟରେ ପ୍ରାପ୍ତ ଅର୍ଥ ସେ ବ୍ୟାଙ୍କରେ ନିୟମିତ ଭାବେ ଜମା ଦେଉଥିଲେ । ଏହି ବାଳକ ଅଳ୍ପକାଳରେ ବିଖ୍ୟାତ ମ୍ୟାକ୍ସିମ କମାଣ ନିର୍ମାତା ବୋଲି ଜଗତରେ ପ୍ରସିଦ୍ଧି ଲାଭ କରି ଅଛନ୍ତି ।

ସୁପ୍ରସିଦ୍ଧ ଧନକୁବେର ଲର୍ଡ଼ ଷ୍ଟ୍ରଥ୍‌କୋନାଙ୍କର ବାଲ୍ୟ ଜୀବନ ଅତ୍ୟନ୍ତ ଅଦ୍ଭୁତ । ସେ ସ୍କଟଲ୍ୟାଣ୍ଡର ସାମାନ୍ୟ ଗୋଟିଏ କୃଷକ ଗୃହରେ ଜନ୍ମ ଗ୍ରହଣ କରି ଥିଲେ , ଗୋଟିଏ ଜାହାଜରେ ଭୃତ୍ୟକାର୍ଯ୍ୟ କରି ସେ କାନାଡା ଆଗମନ କରି ହଡସନ କୋମ୍ପାନୀର ଅଧୀନରେ ଗୋଟିଏ କାର୍ଯ୍ୟ ଗ୍ରହଣ କଲେ । ଏହି କାର୍ଯ୍ୟରେ ତାହାଙ୍କୁ କ୍ରମାଗତ ତ୍ରିଶ ବର୍ଷ ପର୍ଯ୍ୟନ୍ତ ଉତ୍ତର ମେରୁ ନିକଟବର୍ତ୍ତୀ ଜନଶୂନ୍ୟ ଲାବ୍ରାଡର ପ୍ରଦେଶରେ ଅବସ୍ଥାନ କରିବାକୁ ପଡ଼ିଥିଲା । ଏହି ତ୍ରିଂଶ ବର୍ଷରେ ସେ ନ୍ୟୁନକଳ୍ପେ ତ୍ରିଶ ସହସ୍ର ଟଙ୍କା ସଞ୍ଚୟ କରିଥିଲେ । ଅବଶେଷରେ ଏହି ଟଙ୍କା ରେଲଓ୍ୱେ କୋମ୍ପାନୀରେ ଲଗାଇ କ୍ରମେ ଧନକୁବେର ହେଲେ ।

ବୋମ୍ବାଇ ହାଇକୋର୍ଟର ବିଚାରପତି ଚନ୍ଦାବର୍କାର ଏକ ମହାରାଷ୍ଟ୍ର ରମଣୀର ଅପୂର୍ବ ତେଜସ୍ୱିତାର କଥା ଉଲ୍ଲେଖ କରି-ଅଛନ୍ତି । ଯେତେବେଳେ ଅମ୍ଭମାନଙ୍କ ଠାରୁ ଆତ୍ମ ନିର୍ଭରତାର ଏକ ପ୍ରକାର ତିରୋହିତ ହୋଇ ଯିବାକୁ ଆରମ୍ଭ ହୋଇଅଛି , ଯେତେ-ବେଳେ ଅମ୍ଭେମାନେ ଅତି ସହଜରେ ଅପରର ଗଳଗ୍ରହ ହୋଇ ପଡ଼ିବାକୁ କୁଣ୍ଠିତ ହେବାକୁ ନାହିଁ , ସେତେବେଳେ ଏହି ମହାରାଷ୍ଟ୍ର ରମଣୀର କଥାରେ କାହାର କାହାର ପ୍ରାଣରେ ନବ ତେଜର ଆବି-ର୍ଭାବ ହୋଇ ପାରେ । କିପରି ଆତ୍ମ ସମ୍ମାନ ରକ୍ଷା କରି ଯାଏ , ତାହା ଏହି ଅଶିକ୍ଷିତା ମହାରାଷ୍ଟ୍ର ରମଣୀ ଯେପରି ବୁଝି ପାରିଥିଲେ ତାହା ଚିନ୍ତା କଲେ ପ୍ରକୃତରେ ବିସ୍ମିତ ହେବାକୁ ହୁଏ । ବିଚାରପତି ଚନ୍ଦାବର୍କାର ଲେଖି ଅଛନ୍ତି , " ଏକଦିନ ପ୍ରାତଃ କାଳରେ ମୁଁ ଗୋଟିଏ ଗ୍ରାମକୁ ବୁଲି ଯାଇଥିଲି । ସେଠାରେ ଅନେକ ମହାରାଷ୍ଟ୍ର ନର-ନାରୀ ଓ ବାଳକ ବାଳିକା ସମବେତ ଥିବାର ଦେଖିଲି । ସେମାନେ ଅଦୂର ବର୍ତ୍ତୀ କୌଣସି ନଗରରୁ ଗୋ-ଯାନ ସାହାଯ୍ୟରେ ପଲ୍ଲୀ ଆବାସକୁ ଗମନ କରୁଥିଲେ । ପଥ ମଧ୍ୟରେ ବିଶ୍ରାମ କରିବା ନିମନ୍ତେ ସେମାନେ ଗୋଟିଏ ଗ୍ରାମର ପ୍ରାନ୍ତ ଦେଶରେ ଗୋ-ଯାନରୁ ଅବ-ତରଣ କରିଥିଲେ , ପୁରୁଷମାନେ ନାନାପ୍ରକାର ବାକ୍ ବିତଣ୍ଡା ଲଗାଇ ଦେଇଥିଲେ , ସ୍ତ୍ରୀଲୋକମାନେ ସେମାନଙ୍କର ଦ୍ରବ୍ୟାଦି ଯଥାଭାବେ ନ୍ୟସ୍ତ କରୁଥିଲେ , ଅତି ଛୋଟ ଛୋଟ ଶିଶୁଗଣ ରହି-ରହି କାନ୍ଦୁଥିଲେ । ଗୋଟିଏ ଛୋଟ ବାଳକ କାନ୍ଦି କାନ୍ଦି ମା ନିକ-ଟରେ ଖାଇବାକୁ ମାଗୁଥିଲା । ମା ସେତେବେଳେ ପୁଟୁଳା ପୁଟୁଳି ବାନ୍ଧିବାରେ ବ୍ୟସ୍ତ— ସନ୍ତାନକୁ ତୀବ୍ର ଦୃଷ୍ଟିରେ ଚାହିଁ କହିଲା , "ମରୁଛୁ , ଏଠାରେ ତୋତେ ଜଙ୍ଗଲରେ କାହା ଖାଇବାକୁ ଦେବ ?" ବାଳକଟିର କ୍ରନ୍ଦନ ଦେଖି ମୋର ବଡ ଦୁଃଖ ହେଲା , ମୁଁ ସ୍ତ୍ରୀଲୋକଟି

ଅତଃଭୁ ଗୃହିଂ କହିଲ, "ଦେଖ, ଏଠାରୁ କିଛି ଦୂରରେ ଜଣେ ଅନ୍ଧ ହିକ୍ଷା କରୁଅଛି, ମୁଁ ଏହି ପଇସା ଦେଉଅଛି, ପିଲାଙ୍କୁ କିଛି ଅନ୍ନ କିଣି ଖାଇବାକୁ ଦିଅ"। ସ୍ତ୍ରୀ ଲୋକଙ୍କ ଖୁବ ଦ୍ବେଷ ସହିତ ଗ୍ରୀବା ବଙ୍କାଇକରି ମୋ ଅତଃଭୁ ଗୃହିଂ କହିଲା, "ବାଳଗୃଓ ଥିଲେ ଯେ! ତୁମ୍ଭେ କି ମନେକର ଅମ୍ଭେମାନେ ଭିକ୍ଷୁକ, ଯେ ତୁମ୍ଭ ନିକଟରୁ ପଇସା ନେବୁ? ତୁମ୍ଭର ପଇସା ତୁମ୍ଭଠାରେ ଥାଉ। ଅମ୍ଭମାନଙ୍କର ହାତ ଗୋଡ଼ ଅଛି, ଅମ୍ଭେମାନେ ତୁମ୍ଭପରି କାମକରି ଖାଇ-ପାରୁଁ"। ମୁଁ ତ ନୀରବ ହେଲି। ସ୍ତ୍ରୀ ଲୋକଙ୍କ ମୋତେ "ବାଳଗୃଓ" କହିଲା କାହିଁକି ତାହା ବୁଝି ପାରିଲି। ବାଳଗୃଓ ପରି ଦାତା ଅତଃ ଯେଶୋପ୍ନା ମାନଙ୍କ ମଧ୍ୟରେ ନ ଥିଲେ, ତେଣୁ ସେ ମୋତେ ବଦ୍ରୁପ କରି ବାଳଗୃଓ ସହିତ ତୁଳନା କରିଥିଲା। ମୁଁ ମୋର ପଇସା କେତେଟି ପକେଟରେ ରଖି ଅନ୍ୟ କିଛି କହିବାକୁ ଇଚ୍ଛା କରିଥିଲି, କିନ୍ତୁ ସ୍ତ୍ରୀ ଲୋକଟିର କ୍ରୋଧ ତେତେବେଳେ ସୁଦ୍ଧା ପ୍ରଶମିତ ହୋଇ ନାହିଁ। ସେ କହିବାକୁ ଲାଗିଲା, "ତୁମ୍ଭେ ଘରରେ ତୁମ୍ଭର ଦାନ-ଶୀଳତା ଦେଖାଅ, ଅମ୍ଭେମାନେ ଗରିବ ବୋଲି ଅମ୍ଭମାନଙ୍କୁ ଅପମାନ କରନା"। ଶୀଘ୍ର ସ୍ତ୍ରୀ ଲୋକଟିର ସ୍ୱାମୀ ଅମ୍ଭ ଦୁହିଙ୍କ ମଧ୍ୟରେ ଉପସ୍ଥିତ ହେଲା। ସେ ସମସ୍ତ କଥା ଶୁଣି କହିଲା, "ହଁ ମହାଶୟ! ମୋର ସ୍ତ୍ରୀ ଅପଣଙ୍କୁ ଠିକ୍ କହୁଅଛି। ଅମ୍ଭେମାନେ ଗରିବ, ମୂଲ କରି ଖାଉଁ, ଅମ୍ଭମାନଙ୍କର ଯାହା ଉପାର୍ଜନ ହୁଏ, ତହିଁରେ ଗରିବ ଭାବେ ଚଳିଯାଏ, ପରର ଦାନ ଉପରେ ନିର୍ଭର କରି ରହିବା ଅପେକ୍ଷା ଲଜ୍ଜାର ବିଷୟ ଅଉ କିଛି ନାହିଁ।"

ବାଳକ ଓ ଯୁବକମାନେ ସ୍ମରଣ ରଖିବେ, ନିଜକୁ ସୁଖୀ ରଖି କେହି ଧନୀ, ବିଦ୍ୱାନ୍ କିମ୍ବା ଯଶସ୍ୱୀ ହୋଇନାହିଁ।

---ꩮ0꩟0꩟ꩮ---

